# ପ୍ୟାରୀମୋହନ

## —ସାହସ ତ କମ୍ ନୁହେ—

"ସହରପାଖରେ ଗୋଟିଏ ସ୍କୁଲ୍ ଅଛି ବୋଲି ସିନା, ତାଙ୍କର ଏତେ ସାହସ ! ଆଜି ମୋତେ ତଡ଼ିଦେଲେ, କାଲି ଆଉ କାହାକୁ ବାହାର କରିଦେବେ । ଯେ ତାଙ୍କ କଥା ନ ମାନିବ, ଯେ ତାଙ୍କ ପାଖରେ ଜଙ୍କର ହୋଇ ନ ଚଳିବ, ତାର ତ ଏଇ ଦଶା ହେବ । ତା ଜୀବନଟା ମାଟି ହେବ ସିନା ! ଏହାର ନିଶ୍ଚୟ ପ୍ରତିକାର ହେବା ଦରକାର ।

ପିଲାଟି ଉତ୍ତେଜନାର ସହିତ ଏହା କହୁ କହୁ ଦୁଇଖୋଜ ବୁଲି ଆସିଲେ ।

ଆଉ ସାଙ୍ଗ ପିଲାଦୁଇଟି ସେଠାରେ ବସିଥିଲେ । ସେ ଏ କଥା ଶୁଣିଲେ, ଏହା ଠିକ୍ କଥା ବୋଲି ଜାଣିଲେ । କିନ୍ତୁ ତାଙ୍କ ମନରେ ସନ୍ଦେହ, "ପ୍ରତିକାର କଣ ହେବ ? କିପରି ବା ହେବ ?"

ଆଗ ପିଲାଟି ସାଙ୍ଗ ଦୁହିଁଙ୍କର ମନକଥା ଜାଣିପାରିଲେ । ସାଙ୍ଗେ ସାଙ୍ଗେ କହି ଉଠିଲେ, "ସହରରେ ଆଉ ଗୋଟିଏ ସ୍କୁଲ୍ ବସାଇବାକୁ ହେବ । ତା ହେଲେ ସରକାରଙ୍କ ଆଣ୍ଠୁ ଭାଙ୍ଗିବ । ଯେ ତାଙ୍କ ସ୍କୁଲରେ ପଢ଼ିବାର ସୁବିଧା ନ ପାଇବ, ସେ ଏ ସ୍କୁଲରେ ପଢ଼ିବ ।"

"ତା ତ ସତ; କିନ୍ତୁ ଆଉ ଗୋଟିଏ ସ୍କୁଲ୍ ହେବ କିପରି ? କିଏ କରିବ ? ସ୍କୁଲଟିଏ ବସାଇବା କଅଣ ସହଜ କଥା"—ଜଣେ ବନ୍ଧୁ ମୁହଁ ଖୋଲି ପଚାରିଲେ ।

ପିଲାଟି ଉତ୍ତର ଦେଲେ, "ରଥେ, ତୁମେ ପୁଣି ଏପରି କଥା କହୁଛ ? ମନ ଥିଲେ କାମ ପଚ୍ଛାଇବ ? କଦାପି ନୁହେ । ଭଲ କାମରେ

Digitized by srujanika@gmail.com

ଠାକୁରେ ନିଶ୍ଚୟ ସାହାଯ୍ୟ ହେବେ । ଆଜି ଗୋଟାଏ ସ୍କୁଲ ଯେ କୌଣସି ପ୍ରକାରେ କରିବାକୁ ହିଁ ହେବ ।

ଏହା ଶୁଣି ସାଙ୍ଗ ଦୁହେଁ ମନେ ମନେ ବୋଧହୁଏ ଭାବିଥିବେ— ପିଲାର ତ ସାହସ କମ୍ ନୁହେ !

ସତକୁ ସତ ସେ ପିଲାଟିର ସେ ଦିନର କଥାହିଁ ରହିଥିଲା । ତାର ଫଳରେ ଆଜି କଟକ ସହରରେ ଠିଆ ହୋଇଛି "ପ୍ୟାରୀମୋହନ ଏକାଡ଼େମୀ" । ହଜାର ହଜାର ପିଲା ସେଥିରେ ପାଠ ପଢ଼ି ମଣିଷ ହେଉଛନ୍ତି, ବର୍ଷକୁ ବର୍ଷ ଅସଂଖ୍ୟ ପିଲା ପାସ୍ କରି ଯାଉଛନ୍ତି । ସେହି ଗୋଟିଏ ପିଲା ସେ ଦିନ ଯେଉଁ ଗଛର ମଞ୍ଜି ପୋତି ଦେଇଥିଲେ, ଆଜି ହଜାର ହଜାର ପିଲା, ତାର କୋଳି ଖାଉଛନ୍ତି ।

ସେହି ପିଲାଟିର ନାମ ହେଉଛି ପ୍ୟାରୀମୋହନ ଆଚାର୍ଯ୍ୟ । ସେ ସ୍କୁଲଟିକୁ କରିଥିଲେ ବୋଲି ସ୍କୁଲର ନାମ 'ପ୍ୟାରୀମୋହନ ଏକାଡ଼େମୀ' ।

ସେ କାହିଁକି ସେ ଦିନ ଏପରି କହିଥିଲେ ଶୁଣିବ ?

ଏହା ପ୍ରାୟ ଶହେ ବର୍ଷ ତଳର କଥା ।

ପ୍ୟାରୀମୋହନଙ୍କ ଅମଳରେ କଟକରେ ମୋଟିଏ ମାତ୍ର ସରକାରୀ ସ୍କୁଲ ଥିଲା । ଯେ ପଢ଼ିବାକୁ ଇଚ୍ଛା କରୁଥିଲା, ସେ ସେହି ସ୍କୁଲ ବ୍ୟତୀତ ଆଉ କେଉଁଠାକୁ ଯିବାର ଉପାୟ ନ ଥିଲା । ଆଉ ସ୍କୁଲ ତ ନ ଥିଲା; ଯିବ ବା କେଉଁଠିକି ? ସ୍କୁଲ ସେହି, କଲେଜ ବି ସେହି । ତାର ନାମ ଥିଲା କଟକ ଜିଲା ସ୍କୁଲ ।

ସେତେବେଳେ ପ୍ୟାରୀମୋହନଙ୍କୁ ମୋଟେ ଉଣେଇଶ ବର୍ଷ । ଏଣ୍ଟ୍ରାନ୍ସ ପାଶ୍ କରି ସେ ଏଫ୍. ଏ. ପଢ଼ୁଥାଆନ୍ତି । କେତେକ ସାଙ୍ଗପିଲା ମିଶି ଖଣ୍ଡିଏ ଖବର କାଗଜ ବାହାର କଲେ । ତାର ସମ୍ପାଦକ ହେଲେ ପ୍ୟାରୀମୋହନ । କାଗଜର ନାମ "ଉତ୍କଳପୁତ୍ର" ।

ସେ ସମୟରେ ଇଂରେଜମାନେ ତ ଏ ଦେଶରେ ରାଜା । ସେମାନେ ସର୍ବେସର୍ବା । ଯଦି କେହି ସେମାନଙ୍କ ବିରୁଦ୍ଧରେ ପଦେ କିଛି କହୁଥିଲା,

Digitized by srujanika@gmail.com

ତେବେ ଇଂରେଜ ହାକିମମାନେ ଅଗ୍ନିଶର୍ମା ହୋଇ ଯାଉଥିଲେ । ଲୋକେ ମଧ୍ୟ ତାଙ୍କୁ ଡରି ରହୁଥାନ୍ତି ।

କିନ୍ତୁ ପ୍ୟାରୀମୋହନ ଡରିବା ଲୋକ ନୁହନ୍ତି । ସେ ଯେଉଁଠି କାମରେ ଟିକିଏ ଖଇରୁ ଦେଖନ୍ତି, ସେଠି ସମାଲୋଚନା କରନ୍ତି; ତାଙ୍କ ଖବର କାଗଜରେ ଲେଖନ୍ତି ।

କଟକ ସହରର ରାସ୍ତା ଅତି କଦର୍ଯ୍ୟ ହୋଇଥାଏ । କେହି ତାର ଯତ୍ନ ନେଉ ନ ଥାନ୍ତି । ପ୍ୟାରୀମୋହନ ସେଥିପାଇଁ 'ଉତ୍କଳପୁତ୍ର'ରେ ଲେଖିଲେ, "ଘୋଡାର ନିବେଦନ ।" ଘୋଡା ଗୁହାରି କରି କହୁଛି,—"ଏ ରାସ୍ତା ଯେପରି ହୋଇଛି, ସେଥିରେ ମୁଁ ଚାଲିବି କିପରି ? ହାକିମ ତ ନାକରେ ସୋରିଷତେଲ ପକାଇ ଶୋଇଲେ, ମୋ କଥା ବୁଝିବ କିଏ ?"

ଏଇ କଥାରେ ସେତେବେଳର ସାହେବ ଜଜ୍ ମାଜିଷ୍ଟ୍ରେଟ ରାଗି ଗଲେ । "କଅଣ ? ଆମେ ଗୋରାହାକିମ, ସ୍କୁଲର କଳାଲୋକର ପିଲାଟାଏ ଆମର ଦୋଷ ବାଛିବ ! ଏତେ ଧମାକ୍ ! ଆଚ୍ଛା ଠିକ୍ କରିଦେବା ।" ସାଙ୍ଗେ ସାଙ୍ଗେ ସେ ସ୍କୁଲ୍ ହେଡ଼ମାଷ୍ଟରଙ୍କ ପାଖକୁ ଲେଖିଲେ; "ପ୍ୟାରୀମୋହନ ଆଉ ସ୍କୁଲରେ ପଢ଼ି ପାରିବ ନାହିଁ, ତାକୁ ସ୍କୁଲରୁ ବାହାର କରି ଦିଅ ।"

ହେଡ଼ମାଷ୍ଟର ବିହୁସ ନାମ୍ବର । ସେ ତ ସରକାରଙ୍କ ପାଖରେ ଚାକିରି କରିଛନ୍ତି । ସରକାର ଯାହା କହିବେ, ତାହା ମାନିବାକୁ ବାଧ୍ୟ । ନ ହେଲେ ଚାକିରିଖଣ୍ଡିକ ଯିବ ।

ପ୍ୟାରୀମୋହନ ସ୍କୁଲର ଯୋଗ୍ୟ ପିଲା । ଭଲ ପଢ଼ାପଢ଼ି କରନ୍ତି, ସାଧାରଣ କାମରେ ମଧ୍ୟ ଖୁବ୍ ଧୁରନ୍ଧର । ସେଥିପାଇଁ ହେଡ଼ମାଷ୍ଟର ପ୍ୟାରୀମୋହନଙ୍କୁ ଶ୍ରଦ୍ଧା କରନ୍ତି, ନିଜ ପୁଅ ପରି ମନେ କରନ୍ତି । ପ୍ୟାରୀମୋହନଙ୍କୁ ସ୍କୁଲରୁ ତଡ଼ି ଦେବାକୁ ତାଙ୍କର ଇଚ୍ଛା ହେଲା ନାହିଁ । ତେଣୁ ସେ ପ୍ୟାରୀମୋହନଙ୍କୁ ଡାକି ବହୁତ ବୁଝାଇ ସୁଝାଇ କହିଲେ, "ତୁମେ ଯାଅ, ସାହେବଙ୍କ ପାଖରେ ଟିକିଏ କ୍ଷମା ମାଗିଆସ, ତା ହେଲେ ସ୍କୁଲରେ ପଢ଼ି ପାରିବ । ଯଦି ତା ନ କର, ତେବେ ସାହେବଙ୍କ ଆଦେଶରେ ମୁଁ

Digitized by srujanika@gmail.com

ତୁମକୁ ସ୍କୁଲରୁ ତଡ଼ିଦେବ । ତୁମେ ତ ଆଉ କେଉଁଠି ପଢ଼ାପଢ଼ି କରିପାରିବ ନାହିଁ ।"

ପ୍ୟାରୀମୋହନ ଏହା ଶୁଣି ବସିବା ଜାଗାରୁ ଉଠିପଡ଼ିଲେ । କହିଲେ, "ମୁଁ ତ କିଛି ଦୋଷ କରି ନାହିଁ, କ୍ଷମା ମାଗିବି କାହିଁକି ? ନାଁ, ମୁଁ କ୍ଷମା ମାଗିବାକୁ ଯିବି ନାହିଁ । ମୋତେ ସ୍କୁଲରୁ ତଡ଼ି ଦେବେ, ଦିଅନ୍ତୁ । କିନ୍ତୁ ମୁଁ କେବେ ହେଲେ ଏପରି ଭୁଲ ହେବ ନାହିଁ; ସାହେବ ପାଖରେ କ୍ଷମା ମାଗିବି ନାହିଁ ।" ଏହା କହି ପ୍ୟାରୀମୋହନ ସେଠାରୁ ଚାଲି ଆସିଲେ ।

ହେଡ଼ମାଷ୍ଟର ଏହା ଶୁଣି କାବା । ସେ ମନେ ମନେ କହିଲେ, "ବାଃ, ପିଲାର ତ ସାହସ କମ୍ ନୁହେଁ !"

## —ତୁଳସୀ ଦୁଇ ପତ୍ରରୁ ବାସେ—

କଟକ ଜିଲାର ସାଲେପୁର ଥାନାରେ କୁଆଁପାଳ ବୋଲି ଗୋଟିଏ ବଡ଼ ଗାଁ ଅଛି । ତା ପାଖରେ, 'ପଣ୍ଡୁଲୁଣ୍ଡା' ଗୋଟିଏ ଛୋଟିଆ ଗାଁ । ଅଳ୍ପ କେତେ ଘର ଲୋକ ବାସ କରନ୍ତି । ସେହି ଗାଁରେ ଭୁବନମୋହନ ଆଚାର୍ଯ୍ୟ ବୋଲି ଜଣେ ଲୋକ ଥିଲେ । ସେ ସାମାନ୍ୟ ପାଠ ପଢ଼ିଥିଲେ । ତାର ଯୋରରେ କଟକରେ ରହି ସେ ମୁକ୍ତାରି କରୁଥିଲେ । ପ୍ୟାରୀମୋହନ ସେହି ଭୁବନମୋହନ ଆଚାର୍ଯ୍ୟଙ୍କ ପୁଅ । ସେ ୧୮୫୧ ମସିହାରେ ଜନ୍ମ ହୋଇଥିଲେ ।

ପିଲାଦିନେ ପ୍ୟାରୀମୋହନ ଗାଁ ଚଟଶାଳୀରେ ପାଠ ପଢ଼ିଲେ । ସେ ଖୁବ୍ ବୁଦ୍ଧିଆ ଓ ଚାଲାଖ ଥିଲେ । ତେଣୁ ଗାଁ ଚଟଶାଳୀରେ ଯାହା ସାଧାରଣତଃ ପଢ଼ାଯାଏ, ତା ଅପେକ୍ଷା ତାଙ୍କର ଢେର ବେଶି ପାଠ ହାସଲ ହୋଇଥିଲା ।

ପ୍ୟାରୀମୋହନଙ୍କ ହୃଦୟ ବଡ଼ କୋମଳ ଥିଲା । ସେ ଯଦି କାହାର ଦୁଃଖ କଷ୍ଟ ଦେଖୁଥିଲେ, ତେବେ ସେହି ପିଲାଟି ବହୁତ ବ୍ୟସ୍ତ ହୋଇ ଉଠୁଥିଲେ । ଥରେ ଲୋକଟିଏ ହାତ ପତାଇ ଭିକ ମାଗୁ ଥିବାର ଦେଖିଲେ,

Digitized by srujanika@gmail.com

ତାଙ୍କ ମନରେ ଖେଳେ, "ଭଗବାନ ଏହାଙ୍କୁ ଗରିବ କଲେ କାହିଁକି ? ଭଗବାନଙ୍କର ଏ କି ପକ୍ଷପାତ ବିଚାର ! ଜଣେ ଧନୀ ହୋଇ ମଉଜ ମଜ୍‌ଲିସରେ ଚଳିବ, ଆଉ ଜଣେ ଖାଇବାକୁ ନ ପାଇ ଭିକ ମାଗିବ ?

ସବୁବେଳେ ଏହି କଥା ଭାବୁ ଭାବୁ ସେ ଭିନ୍ନ ପ୍ରକାର ପିଲା ହୋଇଗଲେ । ଖେଳକୁଦ କରିବା, ଫୂର୍ତ୍ତି କରିବା; ହସିବା ଆଦି ତାଙ୍କୁ ଭଲ ଲାଗିଲା ନାହିଁ । ସବୁବେଳେ ଏକୁଟିଆ ମନ ମାରିଦେଇ ବସିଥାଆନ୍ତି । ଦୁନିଆର ଏଇ ଖାପଛଡ଼ା କଥାସବୁ ଭାବୁଥାଆନ୍ତି ।

ଗାଁ ଚାଟଶାଳୀ ପାଠ ଶେଷ ହେଲା । ପ୍ୟାରୀମୋହନ କଟକ ପଢ଼ିବାକୁ ଆସିଲେ । ସେତେବେଳେ ତାଙ୍କୁ ବାର ବର୍ଷ । କଟକରେ କଟକ ଜିଲ୍ଲା ସ୍କୁଲ ବୋଲି ଗୋଟିଏ ମାତ୍ର ସ୍କୁଲ ଥାଏ । ପ୍ୟାରୀମୋହନଙ୍କ ନାମ ସେହି ସ୍କୁଲରେ ଲେଖାହେଲା ।

କଟକରେ ତାଙ୍କୁ ବହୁତ ସାଙ୍ଗ ମିଳିଲେ । ସାଧାରଣତଃ ଏ ବୟସରେ ପିଲାମାନେ ବେଶ୍ ମଉଜ ମଜ୍‌ଲିସ୍ କରନ୍ତି । ସାଙ୍ଗସୁଖ ପାଇ ଖେଳାଖେଳି ହସଖୁସିରେ ସମୟ କଟାନ୍ତି । କିନ୍ତୁ ପ୍ୟାରୀମୋହନ ତ ଏଥିରୁ ଅଲଗା । ଏକୁଟିଆ ବସିବା; ଦୁନିଆର ହାନିଲାଭ ଚିନ୍ତା କରିବା ବ୍ୟତୀତ ସେ ଆଉ କିଛି ଜାଣନ୍ତି ନାହିଁ । ତେଣୁ ଶ୍ରେଣୀରେ ପିଲାମାନେ ସାହସ କରି ତାଙ୍କ ପାଖରେ କେହି ପଶି ପାରନ୍ତି ନାହିଁ । ପଛରେ ଦାନ୍ତ ନିକୁଟି ନାନା ଥଟ୍ଟା ଟାପରା କରନ୍ତି । ମାତ୍ର ପ୍ୟାରୀମୋହନଙ୍କର ସେଥିପାଇଁ ଭ୍ରୂକ୍ଷେପ ନ ଥାଏ ।

୧୮୬୬ ମସିହାରେ ଓଡ଼ିଶାରେ 'ନଅଙ୍କ' ଦୁର୍ଭିକ୍ଷ ପଡ଼ିଥିଲା । ଏ ଦୁର୍ଭିକ୍ଷରେ ଖାଇବାକୁ ନ ପାଇ ହଜାର ହଜାର ଲୋକ ମରିଗଲେ । ଚାରିଆଡ଼େ ମଡ଼ାକୁଢ଼ ଗଦା ହେଲା । ଘରଦ୍ୱାର ସମ୍ପତ୍ତିବାଡ଼ି ଛାଡ଼ି କିଏ ଯେ କୁଆଡ଼େ ପଳାଇଲେ । ତାର ପତ୍ତା ରହିଲା ନାହିଁ ।

ସେତେବେଳକୁ ପ୍ୟାରୀମୋହନଙ୍କୁ ପନ୍ଦର ବର୍ଷ ବୟସ । ସେ ଦେଖିଲେ ଖାଇବାକୁ ନ ପାଇ ଏତେ ଲୋକ ପୋକମାଛି ପରି ମରି ଯାଉଛନ୍ତି ।

Digitized by srujanika@gmail.com

ବାଟଘାଟରେ ଯେଉଁମାନେ ଭିକ ମାଗି ବୁଲୁଛନ୍ତି, ସେମାନଙ୍କ ଅବସ୍ଥା ତ କହିଲେ ନ ସରେ । ଏହିସବୁ ଦୃଶ୍ୟ ଦେଖି ପ୍ୟାରୀମୋହନ ଧୈର୍ଯ୍ୟ ଧରି ରହିପାରିଲେ ନାହିଁ । ସେ ଘର ଘର ବୁଲି ଭିକ ମାଗିଲେ । ଯାହା ପାଇଲେ ତାହା ନେଇ ସେହି ଗରିବ ଲୋକଙ୍କ ମଧ୍ୟରେ ବାଣ୍ଟିଲେ ।

ପନ୍ଦର ବର୍ଷର ପିଲା, ସାଙ୍ଗସାଥୀ କେହି ନାହାନ୍ତି । ଏକାକୀ ଶ୍ରେଷ୍ଠ ହାତ ଦୁଇଟିରେ ଯେତିକ କାମ କରାଯିବ, ସେ ସେତକ କରିବାକୁ ପଛାଇ ନ ଥିଲେ, ବରଂ ତା ଆପେକ୍ଷା ଅଧିକ କାମ କରୁଥିଲେ । ସେ ସମୟରେ ସେ ପାଠପଢ଼ା ଭୁଲିଗଲେ । ଘର ଘର ବୁଲି ଭିକମାଗିବା ହେଲା ତାଙ୍କ କାମ । ଯାହା ପାଆନ୍ତି, ସେ ସବୁତକ ଆଣି କାଙ୍ଗାଳମାନଙ୍କ ମଧ୍ୟରେ ବାଣ୍ଟନ୍ତି ; ସେମାନଙ୍କ ହାନିଲାଭ ବୁଝନ୍ତି । ସବୁଠାରୁ ବଡ଼ କଥା, ସେମାନଙ୍କୁ ବୋଧସୋଧ କରି ଦୁଇପଦ କଥା କହନ୍ତି । ସେହି ଗରିବ କାଙ୍ଗାଳମାନେ ପେଟେ ଖାଇବାକୁ ପାଇ ଯେପରି ଖୁସି ହୋଇ ନ ଥାନ୍ତି, ଏହାଙ୍କଠାରୁ ପଦେ ଆଶ୍ୱାସନା କଥା ଶୁଣି ସେପରି ଖୁସି ହୁଅନ୍ତି । ସେମାନେ ମନେ ମନେ ଭାବନ୍ତି, "ଏତେ ଶ୍ରେଷ୍ଠ ପିଲା, ଏହାର ପୁଣି ଏତେ ଦୟା ! ଭଗବାନ ପରମାୟୁ ଦେଇ ଥାଆନ୍ତୁ ।"

ସହରର ଜାଣିବା ଶୁଣିବା ଲୋକେ ପିଲାଟିର ଏ କାମ ଦେଖି ତ ଅବାକ୍ । "ଏତେ ଶ୍ରେଷ୍ଠ ପିଲା; କିନ୍ତୁ ବୁଦ୍ଧି ତ ଶ୍ରେଷ୍ଠ ନୁହେଁ । କାମ ତ ଶ୍ରେଷ୍ଠ ନୁହେଁ । ଏ ବଡ଼ ହେଲେ ନିଶ୍ଚୟ ଦେଶର ମୁହଁ ଉଜ୍ଜ୍ୱଳ କରିବ । ଏଇ ପିଲାଦିନୁ ଏହାର ମହତ୍ତ୍ୱ ଜଣାପଡ଼ିଲାଣି । ତୁଳସୀ ଦୁଇ ପତ୍ରରୁ ବାସେ ।"

## —ସ୍କୁଲ ବସିଲା—

ଅଠର ବର୍ଷ ବୟସରେ ପ୍ୟାରୀମୋହନ ଏଣ୍ଟ୍ରାନ୍ସ ପାଶ୍ କଲେ । ତା ପରେ ଏଫ୍. ଏ. ପଢ଼ିଲେ । ମୋଟେ ବର୍ଷେ ପଢ଼ିଛନ୍ତି, ମାଜିଷ୍ଟ୍ରେଟଙ୍କ ହୁକୁମରେ ସ୍କୁଲରୁ ତଡ଼ା ଖାଇଲେ । ଯେଉଁ ପିଲମାନେ ପଛରେ ଦାନ୍ତ ନିକୁଟି ହେଉଥିଲେ, ସେମାନେ କହିଲେ; "ଭଲ ହୋଇଛି; ଉପଯୁକ୍ତ ଫଳ ପାଇଛି ।" ମୁରବିମାନେ କହିଲେ, "ପିଲାଟା ମାଟି ହୋଇଗଲା ।"

Digitized by srujanika@gmail.com

କିନ୍ତୁ ପ୍ୟାରୀମୋହନଙ୍କର ଏ ସବୁ କଥାକୁ ନିଘା ନ ଥାଏ । ସମସ୍ତଙ୍କ କଥାକୁ କାନ ଦେଲେ, ଅନ୍ୟ ଲୋକର ନିନ୍ଦା ପ୍ରଶଂସାକୁ ଡରିଲେ, ଲୋକ ଦୁନିଆରେ କିଛି କରିପାରିବ ନାହିଁ । ନିଜେ ଯାହା ଭଲ ବୋଲି ଠିକ କରିବ ସେହି କାମରେ ଲାଗି ପଡ଼ିବ । ଯେତେ ବାଧା ବିଘ୍ନ ଆସିଲେ ମଧ୍ୟ ଡରିବ ନାହିଁ କି ପଛାଇବ ନାହିଁ ।

ପ୍ୟାରୀମୋହନଙ୍କର ଅତି ପ୍ରିୟ ସାଙ୍ଗ କେବଳ ଦୁଇ ଜଣ ଥାଆନ୍ତି । ଜଣେ ଭକ୍ତକବି ମଧୁସୂଦନ ରାଓ, ଆଉ ଜଣେ ପଣ୍ଡିତ ଗୋବିନ୍ଦ ରଥ । ଶହ ଶହ ପିଲାଙ୍କ ମଧ୍ୟରୁ ପ୍ୟାରୀମୋହନ ଏହି ଦୁଇଟି ସାଙ୍ଗଙ୍କୁ ବାଛି ନେଇଥିଲେ ।

ମାଜିଷ୍ଟ୍ରେଟଙ୍କ ହୁକୁମରେ ତ ସ୍କୁଲରୁ ଆସିଲେ । ସମସ୍ତେ ତାଙ୍କୁ ପଚାରିଲେ, "ଏବେ ପୁଣି କଣ କରିବ ?" ସେ କିନ୍ତୁ ତାଙ୍କ ସାଙ୍ଗ ଦୁଇ ଜଣଙ୍କୁ ଡାକି ପରାମର୍ଶ କଲେ, "ଏବେ ପୁଣି ପିଲାଏ କଅଣ କରିବେ ? ଯେଉଁ ପିଲାକୁ ଇଚ୍ଛା ହେବ, ସାହେବ ସେ ପିଲାକୁ ସ୍କୁଲରୁ ତଡ଼ିଦେବ । ସେ ପୁଣି ପଢ଼ିବ କେଉଁଠି ? ସହରରେ ଆଉ ଗୋଟିଏ ସ୍କୁଲ ନ କଲେ ତ ନ ଚଳେ ।"

ଏହି କଥା ଶୁଣି ସେତେବେଳେ କେହି କେହି ମୁହଁ ମୋଡ଼ିଲେ, କେହି କେହି ମୁରୁକିହସା ଦେଲେ । କେହି କେହି ବି କହିଲେ, "ପାଗଳଟାଏ, ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଉଛି ।"

କିନ୍ତୁ ପ୍ୟାରୀମୋହନ କାମରେ ଲାଗିଗଲେ । ଗୋଟିଏ ଛୋଟ ପ୍ରାଇମେରୀ ସ୍କୁଲ ଥିଲା । ପଣ୍ଡିତ ଗୋବିନ୍ଦ ରଥ ଓ ପ୍ୟାରୀମୋହନ ନିଜେ ମାଷ୍ଟର ହୋଇ ସେ ସ୍କୁଲରେ ପିଲାଙ୍କୁ ପଢ଼ାଇଲେ । ଆଗେ ଛୋଟ ଛୋଟ ପିଲା ସ୍କୁଲକୁ ଆସିବାକୁ ଡରୁଥିଲେ । ସ୍କୁଲ ବେଳ ହେଲେ, କେଉଁ କୋଣ ଭିତରେ ଯାଇ ଲୁଚୁଥିଲେ । କିନ୍ତୁ ଗୋବିନ୍ଦ ରଥ ଓ ପ୍ୟାରୀମୋହନ ପିଲାମାନଙ୍କୁ ଖାଖେଇ କୁଣ୍ଢେଇ ଏପରି ବଶ କରିନେଲେ ଯେ; ପିଲାମାନେ ଖୁସିରେ ସ୍କୁଲକୁ ଧାଇଁଲେ । ଭଲ ପଢ଼ାପଢ଼ି ହେବାରୁ ମୁରବିମାନେ ବି ଆନନ୍ଦରେ ତାଙ୍କ ପିଲାଙ୍କୁ ସ୍କୁଲକୁ ପଠାଇଲେ । ଧୀରେ ଧୀରେ ସ୍କୁଲରେ ବହୁତ ପିଲା ହେଲେ । ଆଉ ଜଣେ ଦୁଇ ଜଣ ଶିକ୍ଷକ ବି ରହିଲେ । ସ୍କୁଲ କ୍ରମେ ଉନ୍ନତି କଲା । ଚାରି ବର୍ଷ ବାଦ୍ ଏହା ମାଇନର ସ୍କୁଲ ହୋଇଗଲା ।

Digitized by srujanika@gmail.com

ପିଲା ପଢ଼ିବା ପାଇଁ ବେଶି ଘର ଦରକାର ପଡ଼ିଲା; ବେଶି ଶିକ୍ଷକ ରହିଲେ । ପିଲାମାନଙ୍କଠାରୁ ଯେଉଁ ଦରମା ଆଦାୟ ହୁଏ, ସେଥିରୁ ଖର୍ଚ୍ଚ ତୁଳେଇଲା ନାହିଁ । ପ୍ୟାରୀମୋହନ ଦେଖିଲେ, ବାହାରୁ ଟଙ୍କା ନ ଆସିଲେ ନ ଚଳେ । ସେ ସ୍କୁଲରେ ଆଉ ପଢ଼ାଇଲେ ନାହିଁ । ତାଙ୍କ ଲକ୍ଷ୍ୟ ରହିଲା, ଟଙ୍କା କପର ଆସିବ ।

ଚାକିରି କରିବା ପ୍ୟାରୀମୋହନଙ୍କର ସ୍ୱଭାବ ନୁହେ, ତଥାପି ସ୍କୁଲ କରିବାକୁ ହେବ । ସ୍କୁଲ ପାଇଁ ଟଙ୍କା ଦରକାର । ସେଥିପାଇଁ ସେ ଚାକିରି କଲେ । କମିଶନର ଅଫିସରେ କିରାନି ହେଲେ—ମାସକୁ ଦରମା ପଚାଶ ଟଙ୍କା । ପ୍ୟାରୀମୋହନ ମାସଶେଷରେ ଟଙ୍କାତକ ଆଣି ସ୍କୁଲରେ ଦେଇଦିଅନ୍ତି । ସେଥିରୁ ପଇସାଟିଏ ସୁଦ୍ଧା ନିଜ ପାଇଁ ଖର୍ଚ୍ଚ କରନ୍ତି ନାହିଁ ।

ଦୁଇ ବର୍ଷ ପରେ ସେହି ମଧ୍ୟଇଂରାଜୀ ସ୍କୁଲଟି ହାଇସ୍କୁଲରେ ପରିଣତ ହେଲା । ପ୍ୟାରୀମୋହନଙ୍କ ସ୍ୱପ୍ନ ସଫଳ ହେଲା । ଯାହା ଏ ପର୍ଯ୍ୟନ୍ତ ଅସମ୍ଭବ ଥିଲା, ତାହା ସମ୍ଭବ ହେଲା । ଆଜଯାଏ ଯେତୋଟି ସ୍କୁଲ ଥିଲା, ସେ ସବୁ ସରକାରୀ ସ୍କୁଲ । ଜଣେ ସାଧାରଣ ଗରିବ ଲୋକ—ମୋଟେ ସତେଇଶ ବର୍ଷ ବୟସର ଯୁବକ, ପଚାଶ ଟଙ୍କାର ମାତ୍ର ଚାକର—ତାଙ୍କ ଉଦ୍ୟମରେ ବେସରକାରୀ ସ୍କୁଲଟିଏ ବସିପାରିଲା । କେବଳ ମନ ଦୃଢ଼ ଥିବାରୁ ସିନା ଏପରି ଅସାଧ୍ୟ ସାଧନ କରିଲେ । ହଜାର ହଜାର ଟଙ୍କା ରୋଜଗାର କରୁଥିବା ଲୋକ ପକ୍ଷରେ ମଧ୍ୟ ଏହା ସହଜ ନୁହେଁ, ସମ୍ଭବ ବି ନୁହେଁ ।

କ୍ରମେ ସ୍କୁଲ ନାମ ଚାରିଆଡ଼େ ବ୍ୟାପିଗଲା । ଦୂରରୁ, ମଫସଲ ଗାଁମାନଙ୍କରୁ ବହୁତ ପିଲା ଆସି ସ୍କୁଲରେ ନାମ ଲେଖାଇଲେ । ଭଲ କାମ କଲେ ଭଗବାନ ସହାୟ ହୁଅନ୍ତି । ଉପଯୁକ୍ତ ଶିକ୍ଷକମାନେ ଆସି ଜୁଟିଲେ । ଶହ ଶହ ପିଲା ସ୍କୁଲରେ ପଢ଼ି ଯୋଗ୍ୟ ହେଲେ । ପ୍ରତିବର୍ଷ ବହୁତ ପିଲା ପ୍ରବେଶିକା ପରୀକ୍ଷାରେ ପାଶ୍ କଲେ । ପ୍ୟାରୀମୋହନ ସ୍କୁଲଟି ଗଢ଼ିଲେ । ତେଣୁ ସ୍କୁଲ ନାମ ହଆଗଲା "ପ୍ୟାରୀମୋହନ ଏକାଡ଼େମୀ" ।

ସରକାରୀ ସ୍କୁଲ ଯେଉଁମାନେ ଚଳାଉଥିଲେ, ତାଙ୍କ ଆଣ୍ଟ ଭାଙ୍ଗିଲା, ଆଖି ଫିଟିଲା । କୌଣସି ପିଲା ଉପରେ ଆଉ ଅନ୍ୟାୟ ଜୁଲମ କରିବାକୁ ସେମାନେ ସାହସ କଲେ ନାହିଁ ।

Digitized by srujanika@gmail.com

କଟକ ସହର ମଝିରେ ସେ ସ୍କୁଲ ଆଜକାଲି ମୁଣ୍ଡ ଟେକି ଠିଆ ହୋଇଛି । ତା ପରେ ଅବଶ୍ୟ ଆଜ କେତୋଟି ହାଇସ୍କୁଲ ସହରରେ ବସିଛି । ସେ ସବୁ ସ୍କୁଲ ପ୍ୟାରୀମୋହନ ଏକାଡେମୀ ଯୋଗେ ହିଁ ସମ୍ଭବ ହୋଇଛି । ଏ ପର୍ଯ୍ୟନ୍ତ ବି ଏକାଡେମୀ ଟେକ ସେହିପରି ରହିଛି । ପ୍ୟାରୀମୋହନଙ୍କ ପବିତ୍ର ହାତରେ ତାହା ତିଆରି—ତେଣୁ ଯୁଗେ ଯୁଗେ ତାହା ରହିଥିବ ।

## —ସାହିତ୍ୟ ସେବା—

ସ୍କୁଲ ନ ଥିଲା, ପିଲାଙ୍କ ସୁବିଧା ପାଇଁ ପ୍ୟାରୀମୋହନ ସ୍କୁଲ ବସାଇଲେ । କିନ୍ତୁ ପିଲାଏ ପଢ଼ିବେ କଅଣ ? ସେତେବେଳକୁ ଓଡ଼ିଆରେ ଭଲ ବହି କିଛି ଛପା ହୋଇ ନ ଥିଲା । ତେଣୁ ପିଲାଏ ପଢ଼ିବାକୁ ବହି ପାଉ ନ ଥିଲେ । ସବୁ ବିଷୟ ଇଂରାଜୀରେ ପଢ଼ୁଥିଲେ, ନ ହେଲେ ବଙ୍ଗଳା ବହି ଖୋଜୁଥିଲେ ।

ଓଡ଼ିଆ ପିଲା, ଓଡ଼ିଆରେ ନ ପଢ଼ି ଅନ୍ୟ ଭାଷାରେ ବହି ପଢ଼ିବେ । ସେଥିରୁ ସବୁ କଥା ବୁଝି ପାରିବେ ନାହିଁ । ମିଛରେ ବହୁତ ସମୟ ବି ନଷ୍ଟ ହେବ । ତେଣୁ ଓଡ଼ିଆ ଭାଷାରେ କିପରି ବହି ଲେଖା ହେବ, ସେ ସେହି ଉଦ୍ୟମରେ ଲାଗିପଡ଼ିଲେ ।

ତାଙ୍କର ତ ପ୍ରିୟ ସାଙ୍ଗ ଦୁଇ ଜଣ—ଭକ୍ତକବି ମଧୁସୂଦନ ରାଓ ଓ ପଣ୍ଡିତ ଗୋବିନ୍ଦ ରଥ । ପ୍ୟାରୀମୋହନ ସେହିମାନଙ୍କ ସହିତ ମିଶି ଗୁଡ଼ିଏ ପଢ଼ାବହି ପ୍ରକାଶ କଲେ । ପିଲାମାନଙ୍କ ପଢ଼ାବହି ଅଭାବ ଦୂର ହେଲା । ପ୍ୟାରୀମୋହନଙ୍କଠାରୁ ଉତ୍ସାହ ପାଇ ମଧୁସୂଦନ ତଳ ଶିଶୁଙ୍କଠାରୁ ଆରମ୍ଭ କରି ହାଇସ୍କୁଲର କ୍ଲାସରେ ପଢ଼ାହେବା ପର୍ଯ୍ୟନ୍ତ ସବୁ ବହି ଲେଖିଥିଲେ । ପଣ୍ଡିତ ଗୋବିନ୍ଦ ରଥ ମଧ୍ୟ ବହୁତଗୁଡ଼ିଏ ଶ୍ରେଷ୍ଠ ଶ୍ରେଷ୍ଠ ବହି ନିଜେ ଲେଖିଲେ । କେତେଗୁଡ଼ିଏ ପୁରୁଣା ବହି ସଂଗ୍ରହ କରି ଛପାଇଲେ । ଓଡ଼ିଆ ଭାଷାରେ ବହି ନାହିଁ—ଏ ନିନ୍ଦ ଦୂର ହେଲା ।

ପ୍ୟାରୀମୋହନ ଦେଖିଲେ, ଓଡ଼ିଶାର ଇତିହାସ ଓଡ଼ିଆରେ ଲେଖା ହେବା ଦରକାର । ସେଥିପାଇଁ ସେ ନିଜେ ଅଣ୍ଟାଭିଡ଼ି ଲାଗିପଡ଼ିଲେ । କେବଳ

Digitized by srujanika@gmail.com

ବହି ଦେଖି ଇତିହାସ ଲେଖିଲେ ତ ଚଳିବ ନାହିଁ, ତେଣୁ ସେ ଓଡ଼ିଶାର ସବୁ ଅଞ୍ଚଳ ବୁଲି ନାନା ତଥ୍ୟ ସଂଗ୍ରହ କଲେ । 'ଓଡ଼ିଶାର ଇତିହାସ' ବୋଲି ଖଣ୍ଡିଏ ଅତି ସୁନ୍ଦର ବହି ସେ ଲେଖିଛନ୍ତି । ଆଜିକାଲି ବହୁତ ଇତିହାସ ଛପା ହେଲଣି, କିନ୍ତୁ ସେ ଇତିହାସର ଆଦର ଆଜଯାକେ କମି ନାହିଁ । ସେହି ଇତିହାସ ଲେଖିଥିବାରୁ ସରକାର ପ୍ୟାରୀମୋହନଙ୍କୁ ତିନିଶହ ଟଙ୍କା ପୁରସ୍କାର ଦେଲେ ।

ପ୍ୟାରୀମୋହନଙ୍କ ପୂର୍ବପୁରୁଷ ବଙ୍ଗଳାରୁ ଆସି ଓଡ଼ିଶାରେ ରହିଥିଲେ । ତଥାପି ପ୍ୟାରୀମୋହନ ଓଡ଼ିଶାକୁ ନିଜ ଜନ୍ମଭୂମି ବୋଲି ଭାବୁଥିଲେ । ଓଡ଼ିଆ ଭାଷାକୁ ମାତୃଭାଷା ଜାଣି ପୂଜା କରୁଥିଲେ ।

ସେ ସମୟରେ ଦଳେ ବଙ୍ଗାଳୀ ଓଡ଼ିଶାକୁ ଚାକିରି କରିବାକୁ ଆସିଥିଲେ । ସେମାନେ ଭାବିଲେ, "ଓଡ଼ିଆ ଭାଷାରେ ତ ବେଶି କିଛି ବହି ନାହିଁ । ଆମେ ଚେଷ୍ଟା କଲେ ଓଡ଼ିଆ ଭାଷା ଲୁଚିଯିବ, ଆମ ବଙ୍ଗଳା ଭାଷା ଏ ଦେଶରେ ଭାଷା ହେବ ।" ସେଥିପାଇଁ ସେମାନେ ନାନା କୌଶଳ କଲେ ।

କିନ୍ତୁ ପ୍ୟାରୀମୋହନ କହିଲେ, "ନା, ତା ହେବ ନାହିଁ । ଓଡ଼ିଶାରେ ଓଡ଼ିଆ ଭାଷା ରହିବ ।"

ପ୍ୟାରୀମୋହନଙ୍କ ସାଙ୍ଗକୁ ଆଉ କେତେ ଜଣ ଯୋଗ୍ୟ ଲୋକ ଜୁଟିଗଲେ—ବ୍ୟାସକବି ଫକୀରମୋହନ ସେନାପତି, କର୍ମଯୋଗୀ ଗୌରିଶଙ୍କର ରାୟ । ଏହିମାନଙ୍କ ଉଦ୍ୟମରେ ବଙ୍ଗଦେଶରୁ ଆସୁଥିବା ବାବୁମାନଙ୍କର ସବୁ କୌଶଳ ପଣ୍ଡ ହେଲା । ଓଡ଼ିଶାରେ ଓଡ଼ିଆ ଭାଷା ରହିଲା । ସେତେବେଳେ ପ୍ୟାରୀମୋହନ ଓ ତାଙ୍କ ବନ୍ଧୁମାନେ ଝୁଣ୍ଟାଭିଡ଼ି ବାହାରି ନ ଥିଲେ, ଆଜି ଆମେ ଓଡ଼ିଆରେ ଖଣ୍ଡିଏ ବହି ପାଉ ନ ଥାନ୍ତେ । ସ୍କୁଲ କଲେଜରେ ବଙ୍ଗଳା ପଢ଼ା ହେଉଥାଆନ୍ତା । ଓଡ଼ିଆ ଭାଷା ଏକାବେଳକେ ଲୋପ ପାଇଯାଇ ଥାଆନ୍ତା ।

## —ଅସହାୟର ସହାୟ ପ୍ୟାରୀମୋହନ—

ପ୍ୟାରୀମୋହନଙ୍କର ମୁହଁ ସବୁବେଳେ ଗମ୍ଭୀର । ଖୁବ୍ ଅଳ୍ପ ଲୋକଙ୍କ ସହିତ ସେ ମିଶନ୍ତି, କମ ଲୋକଙ୍କ ସାଙ୍ଗରେ କଥାବାର୍ତ୍ତା କରନ୍ତି । ତାଙ୍କ

Digitized by srujanika@gmail.com

ମୁହଁରେ ହସ ପ୍ରାୟ କେହି ଦେଖି ନାହାନ୍ତି । ତେଣୁ ସମସ୍ତେ ଭାବନ୍ତି, ପ୍ୟାରୀମୋହନ ବଡ଼ କଠୋର । ତାଙ୍କ ହୃଦୟରେ ସ୍ନେହ ମମତା ନାହିଁ ।

କିନ୍ତୁ ପ୍ରକୃତରେ ପ୍ୟାରୀମୋହନ ଠିକ୍ ଏହାର ଓଲଟା । ପରର ଦୁଃଖ ଦେଖିଲେ ସେ ବଡ଼ ଅଥୟ ହୋଇ ଉଠୁଥିଲେ । ନଅଙ୍କ ସମୟରେ ଭିକାରୀଙ୍କୁ କପଡ଼ା ଖାଇବାକୁ ଦେଉଥିଲେ, ତାହା ତ ଆଗରୁ ଜାଣିଛ । ସ୍କୁଲରେ ପଢ଼ାଇଲାବେଳେ ପିଲାଙ୍କୁ ଏପରି ସ୍ନେହ ଆଦର କରୁଥିଲେ ଯେ, ପିଲାଏ ଘରେ ବାପା ମାଆଙ୍କ ପାଖରେ ନ ରହି ସ୍କୁଲକୁ ଦଉଡ଼ି ଆସୁଥିଲେ ।

ସେ ସମୟରେ ଆଜିକାଲି ପରି ରେଲଗାଡ଼ି ଚାଲୁ ନ ଥିଲା । ଭାରତର ସବୁଆଡ଼ୁ ହଜାର ହଜାର ଲୋକ ଚାଲି ଚାଲି ପୁରୀକୁ ଆସୁଥିଲେ; ଜଗନ୍ନାଥଙ୍କ ଦର୍ଶନ କରି ଚାଲି ଚାଲି ଗାଆଁକୁ ଫେରୁଥିଲେ । ପ୍ରତିବର୍ଷ ରଥ ସମୟରେ ବହୁତ ଭିଡ଼ ହୁଏ । ହଇଜା ମଧ୍ୟ ଭୟଙ୍କର ଭାବରେ ଲାଗେ । ଯାତ୍ରୀମାନେ ହଇଜା ରୋଗରେ ପଡ଼ି ବଡ଼ କଷ୍ଟ ପାଆନ୍ତି, ବାଟଘାଟରେ ପଡ଼ି ମରନ୍ତି । କାହାକୁ ହଇଜା ହେଲେ ଅନେକ ସମୟରେ ସାଙ୍ଗଲୋକେ ତାକୁ ଛାଡ଼ି ପଳାଇ ଯାଆନ୍ତି; ସେ ବିଚରା ରାସ୍ତା କଡ଼ରେ ପଡ଼ି ଛଟପଟ ହେଉଥାଏ । ପାଟିରେ ମୁନ୍ଦାଏ ପାଣି ଦେବାକୁ କେହି ନ ଥାଏ । ବାଟରେ ଶହ ଶହ ଯାତ୍ରୀ ଚାଲିଥାଆନ୍ତି । ଯେତେ ବିକଳ ହୋଇ ଡାକିଲେ ବି କେହି ହେଲେ ତା ପାଖକୁ ଯାଉ ନ ଥାନ୍ତି ।

ପ୍ୟାରୀମୋହନ ଏ କଥା ଶୁଣିଲେ । ସେ ଆଉ କଟକରେ ଥୟ ଧରି ରହିପାରିଲେ ନାହିଁ । କେତେକ ଔଷଧ, ସାବୁ, ବାର୍ଲି ସାଙ୍ଗରେ ଧରି ଚାଲିଲେ । ରାସ୍ତା କଡ଼ରେ ଯେଉଁଠି ରୋଗୀ ପଡ଼ିଥିବାର ଦେଖିଲେ, ତାର ସେବା ଶୁଶ୍ରୂଷା କଲେ, ଔଷଧ ଦେଲେ, ସାବୁ, ବାର୍ଲି ତିଆରି କରି ଖୁଆଇଲେ ।

ଯେଉଁ ରୋଗୀକୁ ବାପଭାଇ, ସାଙ୍ଗସାଥୀ ଛାଡ଼ି ଚାଲି ଯାଇଥିଲେ, ସେ ରୋଗୀକୁ ଅଜଣା ଅଶୁଣା ପ୍ୟାରୀମୋହନ ସେବା କଲେ, ତାକୁ ରୋଗରୁ ଉଠାଇଲେ, ଅସହାୟ ଲୋକର ସହାୟ ହେଲେ ।

କେତେ ଦୂର ଦେଶରୁ ଆସିଥିବା ରୋଗୀମାନେ ଏ ବିଦେଶ ଭୂଇଁରେ ନିଜ ଜୀବନର ଆଶା ଛାଡ଼ି ପଡ଼ି ରହିଥିଲେ । ପ୍ରାଣ ବିକଳରେ ଛଟପଟ ହେଉଥିଲେ । ପ୍ୟାରୀମୋହନ ନିଜ ଜୀବନକୁ ପାଣି ଛଡ଼ାଇ ତାଙ୍କୁ ନୂଆ ଜୀବନ ଦେଲେ । ଆମ ଭିତରୁ କେତେ ଜଣ ଏପରି କରିପାରିବା ?

Digitized by srujanika@gmail.com

## —ଶେଷ କାଳ—

ପ୍ୟାରୀମୋହନ କମିଶନରର ଅଫିସ କାମ ଛାଡ଼ି ଦେଇଥିଲେ; କିନ୍ତୁ ସ୍କୁଲରେ ଟଙ୍କା ନିଅଣ୍ଟ ପଡ଼ିଲା । ତେଣୁ ସେ ଡମପଡ଼ା ରାଜ୍ୟରେ ମାସକୁ ପଚାଶ ଟଙ୍କା ଦରମାରେ ଚାକିରି କଲେ । ମାସକୁ ମାସ ସେ ପଚାଶ ଟଙ୍କା ଆଣି ସ୍କୁଲ ପାଣ୍ଠିକୁ ଦେଇ ଦଅନ୍ତି । ସେହି ସମୟରେ ସେ ଡମପଡ଼ା ରାଜାଙ୍କର ଗୋଟିଏ ମକଦ୍ଦମା ତଦାରଖ କରୁଥିଲେ । ତାଙ୍କ ଉଦ୍ୟମରେ ସେ ମକଦ୍ଦମାରେ ଡମପଡ଼ା ରାଜା ଜିତିଲେ । ସେ ପ୍ୟାରୀମୋହନଙ୍କ ଉପରେ ଖୁସି ହୋଇ ଦୁଇ ହଜାର ଟଙ୍କା ପୁରସ୍କାର ଦେଲେ । ସେ ଟଙ୍କା ମଧ୍ଯ ପ୍ୟାରୀମୋହନ ଆଣି ସ୍କୁଲକୁ ଦେଇଦେଲେ ।

ସେହି ସମୟରେ ସେ ଡମପଡ଼ାର ଜଣେ ହାକିମ ନିଯୁକ୍ତ ହେଲେ । ମାତ୍ର ସେଠା ପାଣି ତାଙ୍କ ଦେହରେ ଗଲା ନାହିଁ । ପ୍ୟାରୀମୋହନଙ୍କୁ ଜର ହେଲା । ବାଧ୍ୟ ହୋଇ ସେ କଟକ ଫେରି ଆସିଲେ ।

ଜର କ୍ରମେ ବଢ଼ିବାକୁ ଲାଗିଲା । ତାଙ୍କ ପ୍ରିୟବନ୍ଧୁ ମଧୁସୂଦନ ରାଓ ସେତେବେଳେ ପୁରୀ ଜିଲାସ୍କୁଲରେ ଚାକିରି କରିଥାଆନ୍ତି । ଖବର ପାଇ ସେ ଆସି କଟକରେ ପହଞ୍ଚିଲେ ।

ପ୍ୟାରୀମୋହନଙ୍କ ଦେହ ଖରାପ ହୋଇଛି ଶୁଣି ସହରର ବହୁଲୋକ ତାଙ୍କ ଘରପାଖରେ ରୁଣ୍ଡ ହେଲେ । ମାତ୍ର ବେଶି ଲୋକ ଜମା ହେବାକୁ ପ୍ୟାରୀମୋହନ ପସନ୍ଦ କରୁ ନ ଥିଲେ । କେବଳ ମଧୁସୂଦନ ରାତଦିନ ତାଙ୍କ ପାଖରେ ବସି ଥାଆନ୍ତି । ତାଙ୍କ କୋଳରେ ମୁଣ୍ଡ ରଖି ପ୍ୟାରୀମୋହନ ଆରାମ ପାଉଥାଆନ୍ତି ।

ସେହି ଆରାମ ହିଁ ପ୍ୟାରୀମୋହନଙ୍କର ସବୁ ଦିନର ଆରାମରେ ପରିଣତ ହେଲା । ପ୍ୟାରୀମୋହନ କେବଳ ଅଣତିରିଶ ବର୍ଷ ବୟସରେ ଓଡ଼ିଶାର ଲୋକଙ୍କୁ କନ୍ଦାଇ କନ୍ଦାଇ ଆଖି ବୁଜିଲେ । ଅଳ୍ପ ଦିନ ମାତ୍ର ସେ ଏ ଜଗତରେ ରହିଥିଲେ । ଏହି ଅଳ୍ପ ଦିନ ଭିତରେ ସେ ଯେଉଁ କୀର୍ତ୍ତି ରଖିଦେଇ ଯାଇଛନ୍ତି, ତାହା ଯୁଗ ଯୁଗ ଧରି ରହିଥିବ ।



Digitized by srujanika@gmail.com